# ଚନ୍ଦନ ଓ ହୋରୀ ସଙ୍ଗୀତ ।



## ପ୍ରସ୍ତାବନା ।

( କୀର୍ତ୍ତନ ସ୍ୱର )

କିଶୋରୀ କିଶୋର ପ୍ରେମେ ସୁରସିକେ ରସ ହେ ।
କରି ନାମାମୃତ ପାନ ବଇକୁଣ୍ଠେ ବସ ହେ । ପଦ ।

ସେହି ନାମରେ ମନ୍ତ,
ସଂସାରର ମୋହମାୟା ତେଜି ନାମରେ ମନ୍ତ ।
କାମ କ୍ରୋଧ ଲୋଭ ମୋହ ତେଜି ନାମରେ ମନ୍ତ ॥

ହରିନାମ ବଜ୍ର ପାପ ପରବତ ପରି ।
ଚୂରିପକା ସେହି ଅସ୍ତ୍ର ସଦା କରେ ଧରି ॥

ଦେହ ରହିବ ନାହିଁ,
ଏହି ମାଟିଦେହ ମାଟିରେ ମିଶିବ ରହିବ ନାହିଁ ।
ଦମ୍ଭ ଗର୍ବ ସୁର ବୀରପଣ ରହିବ ନାହିଁ ॥

ଉଚ୍ଚେ ହରିବୋଲ ହରିବୋଲ,
ଅଜାମିଳ ପରି ପାପୀ ଗଲା ତରି ହରିବୋଲ ହରିବୋଲ ।
ଜଗାଇ ମାଧାଇ ତରିଗଲେ ହରିବୋଲ ହରିବୋଲ ॥
ବ୍ୟାସ ବାଲ୍ମିକି ନାରଦ ତରିଲେ ହରିବୋଲ ହରିବୋଲ ।
ଅନ୍ତେଧର କାଟି ପକା ଭବ ରଜ୍ଜୁ ଫାଶ ହେଳେ ।



# ଚନ୍ଦନ ସଙ୍ଗୀତ ।

( ମଦନମୋହନ—ବୃତ୍ତେ )

କି ଶୋଭା ପାଉଛି ।

ଅଜି ସଖୀଧାମ ନୟନାଭିରାମ ଜନମାନସ ମୋହୁଛି ଗୋ । ପଦ ।

ଜଗତବନ୍ଦନ ଶ୍ରୀନନ୍ଦନନ୍ଦନ ଚନ୍ଦନଯାତ୍ରାକୁ ବିଜେ ।
ଘଡଘଣ୍ଟ ତାଳ ମର୍ଦ୍ଦଳ କଂସାଳ ବାଇଶିପାବଚ୍ଛେ ବାଜେ । ୧ ।
ବେଶକାରି ବେଶ ସାଜିଛନ୍ତି ପୀତବାସ କଷି କଟିତଟେ ।
ଘନସାର ନୀଳଅଙ୍ଗେ ଜର ଜର ହୃଦେ କଉସ୍ତୁଭ ଝଟେ । ୨ ।
ଜିଣି ନବରବି ନଟବର ଛବି କର୍ଣ୍ଣେ ମକରକୁଣ୍ଡଳ ।
ନାସେ ନାସାମଣି ତ୍ରିଭଙ୍ଗିମାଠାଣି ଭାଲୁରେ ଚନ୍ଦ୍ରକାଚୂଳ । ୩ ।
ଅଧରେ ଲଗାଇ ମଧୁର ମୁରଲୀ ଧରିଛନ୍ତି ବେନିକରେ ।
ବଇଷ୍ଣବ କହି ମୋ ନାମ ବଜାଇ ଡାକିବେ କି ସଚ୍ଛେ ଥରେ । ୪ ।



( ବସନ୍ତେ ରବ ଦେଉଅଛି କୋକିଳ—ବୃତ୍ତେ )

ଗୋ ବିମାନେ ବିଜେ ରାଧା ଶ୍ୟାମସୁନ୍ଦର ।
ଆଦରେ ସେବକବୃନ୍ଦେ ବାହୁଛନ୍ତି କନ୍ଧର । ପଦ ।
ପଚ୍ଛୁଆରେ ବ୍ରହ୍ମା ଶିବ,
ଚନ୍ଦ୍ର ବରୁଣ ବାସବ;
ସୂର୍ଯ୍ୟସହ ଦେବଗଣେ ଖଟିଛନ୍ତି ପାଦର । ୧ ।
ବ୍ୟାପିଣ ଦୁନ୍ଦୁଭିଧ୍ୱନି,
କର୍ଣ୍ଣ ଉଠେ ପୁର ଘନ;
ଗମନ୍ତି କି ସୁଖେ ଚେଙ୍କି ନୀଳଗିରିକନ୍ଦର । ୨ ।

ଭୁଣ୍ଡେ ଗାଇ ହରିଗୁଣ,
ଗାବନ୍ତି କଳ୍ପଗଣ;
ପିନ୍ଧି ନୀଳଚେଲ ପରେ ମଣ୍ଡି ଜଗ ସୁନ୍ଦର । ୩ ।
ରହି ରହି ଦଣ୍ଡେ ଦଣ୍ଡେ,
ଯାଉଛନ୍ତି ବଡ଼ଦାଣ୍ଡେ;
ବଇ ବୋଲେ ପନ୍ତିଭୋଗେ ପୂର୍ଣ୍ଣକରି ଉଦର । ୪ ।

—❀—

( ଘନ କାଳଅରେ ସେ ମୋ—ବୃତ୍ତେ )

ଦେଖ ସଙ୍ଗାତ ଗୋ ଏହି ହଟିଆ ହର
ଖାଉଥିଲେ ଗୋପେ ଦହି ଦୁଧ ଶ୍ରୀକର । ପଦ ।
ଦେଖି ଏ ଗ୍ରୀଷମ କାଳ ଭକ୍ଷିବାକୁ ଫଳମୂଳ
ଟାକଛନ୍ତି ଅଦମୂଳ ଗୁହାଁ କେଉଁପର । ୧ ।
ଆମ୍ବ ପଣସ କଦଳୀ ଗଜାମୁଗ ଖଣ୍ଡ କୋଳି
ସଜାହୋଇ ଚପ ପିଠ ଶ୍ରୀମୁଖରେ ଢାଳାର । ୨ ।
ଢରଭୁଜ କର୍କଟିକା ଠେଭା ନାଗରଙ୍ଗ ମକା
ଦାଡ଼ିମ୍ବ ବଳକୁ କୋପି ଦୁଗ୍ଧ ଅଙ୍ଗୁର । ୩ ।
ଶୁଣିଛୁ କୋଟିବ୍ରହ୍ମାଣ୍ଡ ଯେ ଗର୍ଭରେ ହୋଇ ରୁଣ୍ଡ
ରହିଛନ୍ତି ସେ ଉଦର ଏଥେ ହେବ ଭର୍ତ୍ତି । ୪ ।
କେବଳ ଭକ୍ତିରେ ବଶ ଅଟଇ ଏ ପୀତବାସ
ଲେଟକୁ ମଧ୍ୟେ ଅଶେଷ ବଇର ଗୁହାରି । ୫ ।

—❀—

( ଦୁଃଖିଧନ ନୀଳମଣି—ବୃତ୍ତେ )

ଦେଖ ନଗେନ୍ଦ୍ର ଚନ୍ଦନ ଗୃପ ଗୋ,
ଲେଖ ସେ କାଳର ଛବ ହୃଦତଟେ
କଟିଯିବ ହେଲେ କୋଟିଜନ୍ମ ପାପ । ପଦ ।

ଯତନେ ରତନ ସିଂହାସନ ତେଜ
ରୂପରେ ଆପଣା ସୁଖେ ହୋଇ ରାଜ
ଦିବସ ତପନ ତାପ ହଟାବନ୍ତି
ଘନରସେ ବୁଡ଼ି ବଇକୁଣ୍ଠ ଭୂପ । ୧ ।
ଅନ୍ତଡ଼ିଣି ଉଦ୍ୱାସ ରୂମର ଆଲଟ
ଛହିଁରେ ଲାଗିଛି ରଜତର ବେଣ୍ଟ
ନୀଳ ଧବଳ ବର୍ଣ୍ଣିରେ ଶୋଭୁଅଛି
ତଥିଉପରେ ରାଜଇ ଚନ୍ଦ୍ରାତପ । ୨ ।
ଫୁଲ ଫଳେ ନାବ ମଣ୍ଡଣୀ ହୋଇଣ
ବଢ଼ାଇ ଦେଇଛି ଶୋଭା ଶତେଗୁଣ
ନାନାରଙ୍ଗେ ଚିତ୍ର ବିଚିତ୍ର ତା ଅଙ୍ଗ
ମଙ୍ଗ ଗୋଟି କି ସେ ଅନଙ୍ଗର ରୂପ । ୩ ।
ବରହୀ ପୁଚ୍ଛ ବ୍ୟଜନ କରେ ନେଇ
ବଞ୍ଚୁଛନ୍ତି ବନ୍ଧୁ ଭକ୍ତେ ଆଗେ ଥାଇ
ଅଣିମାଦି ସୁଖ ଦାୟିନୀ ଗଣିକା
ନାଚନ୍ତି ଛମୁରେ ବଇ କରେ ତପ । ୪ ।

—§—

( ଝୁଲନ ଗୋ କିଶୋରୀ କାହ୍ନା—ବୃନ୍ଦେ )

ଭଜନ ଗୋ ସଧୀରେ ରୂହାଁ,
ନାବରେ ଭ୍ରମରେ ବିଜେ ଚନ୍ଦ୍ରାବଳୀ ନାହା । ପଦ ।
ରଜତର ନାଉ ଗୋଟି ଦିଶଇ କି ଆହା,
ଖେଳନ୍ତି [illegible]ରଙ୍ଗେ ହରି ବାଇନ୍ତ ଚନ୍ଦ୍ରା । ୧ ।
ଧରିଛନ୍ତି ନାରୀ ନର କେ କାହାର ବାହା
ସେ ଯୋଡ଼ଙ୍କୁ ପ୍ରଦକ୍ଷିଣ କରୁଛନ୍ତି ଯାହା । ୨ ।

ଝୁଲଝୁଲି ମିଳି ହରଧ୍ୱନି ଭୁଲେ ତାହା
ହରି ଘେନିଯାଏ ପାପୀ ହୃଦୟରୁ ଦାହା । ୩ ।
କାହା ନେତ୍ର ପବିତ୍ର ନୋହିବ ଗୃହେଁ ଏହା
ସତେ କି ଥିବ ସେ ଠାବେ ବଇଆ ବାଇଆ । ୪ ।

—❁—

( ପୁଷ୍ପ ବରଷନ୍ତି ଇନ୍ଦ୍ର—ବୃତ୍ତେ )

ଏ ହଟିଆନନ୍ଦ ଶିଷ୍ୟ ଅସିଛ ସାଜିଣି ଏଥି ନଟବର ବେଶ ।ପଦ।
ଥାଇଣ ବଡ଼ଦେଉଳେ ଭଲ ମନେ କସ ।
ଜାଣୁଛି ନାସ୍ତି ସୃଷ୍ଟିକି କରିବ ଏ ନାଶ । ୧ ।
କରନ୍ତିଦନ୍ତ ପଲଙ୍କ ଲାଗିଲା କି ବିଷ ।
ନରେନ୍ଦ୍ର ନାବରେ କପାଁ ବଳିଲା ମାନସ । ୨ ।
କ୍ଷୀର ସରପୁଳି ମଣ୍ଡା ଅମାଲୁ ପାୟସ ।
ତହୁଁକି ଏ ଫଳ ମୂଳ ଲାଗିଲା ସରସ । ୩ ।
ଭୁଲିଲା କି ପାଞ୍ଚଧୂପ ସାଢ଼ ଅବକାଶ ।
ପଡ଼ିଲା କି ମନେ ଗୋପ ପଲ୍ଲି ବନ ଦେଶ । ୪ ।
କେ ବୁଝିପାରିବ ମାୟାଧର ମାୟା ଲେସ ।
ଯେଣେ ଯାଅ ବଇଷ୍ଣବେ ନଅ କର ଦାସ । ୫ ।

—❁—

( ଚନ୍ଦ୍ରବଦନାରେ ଜଣାଉଛି—ବୃତ୍ତେ )

ଆସ ବଉଳ ଗୋ ସ୍ନିଗ୍ଧା ଚନ୍ଦନ ଯାତ୍ରା ଦେଖି । ଶୁଭୁ ନାହିଁ
ଦାଣ୍ଡେ କେତେ ନାସ୍ତି ନରେ ହେଉଛନ୍ତି ଯକାଯକ । ପଦ ।
ନରେନ୍ଦ୍ର ଉପରେ ଚନ୍ଦ୍ର ଅଲୋକରେ ମନେ ହୋଇ ମହାସୁଖୀ ।
ଗଲେ ମଞ୍ଚିହାର ମଣ୍ତ୍ରିଣ ନାଗରଗଣେ ଗୃହେଁ ଥିବେ ଝାଙ୍କି । ୧ ।
ପରେ୨ ପର ଯୁବକ ଯୁବତୀ କେ କାହା ଶୋଭା ନ ଲକ୍ଷି ।
ପେଲଦେଇ ଗୃଲଯିବା କାଲେ ପଶ୍ଚ ହେଲେ ହେବେ ଯକାଯକ । ୨

ଚନ୍ଦନ ଅଙ୍ଗରେ ଗୋଳ ଏକତରେ ପିଚକା ମାରନ୍ତି ଯୋଖି ।
ସେ ପାଣିରୁ ଟୋପା ପଡ଼ନ୍ତେ ଉପରେ ଦେହ ଉଠିବ ପୁଲକ । ୩
ନଯୂନେ୨ ପୁରୁଷ ରମଣୀ ରମଣ ଭାବକୁ ରଖି ।
ହୋଇ ଠଗଠଉ ସୁଯୋଗ ପାଇଲେ ନେବେ କେ କାହାକୁ ଝିଙ୍କି ।୪
ଶୀତଳ ପବନ ବାଜ ଘନଘନ ଦେହ ହାଲ ଯିବ ଶୁଖି ।
ଭୁଆ୨ କଉ ନୂଆ୨ କଥା କବ ଶୁଣୁଥାଉ ଟିକ । ୫ ।



( କ ନାମ ବୋଇଲୁ ଭୁହ—ବୃତ୍ତେ )

୧ମ-ସ-କେ କରେ ଚନ୍ଦନଯାତ ଗୋ ସଙ୍ଗାତ କେ କରେ ଚନ୍ଦନଯାତ
୨ୟ-ସ-ଜାଣିନାହଁ କଗୋ କରୁଅଛୁ ପଗ୍ର ସେ ହଟିଆ ନନ୍ଦସୁତ । ୧ ।
୧ମ-ତାଙ୍କ ବାସ କେଉଁଠାରେ ଗୋ ସଙ୍ଗାତ ତାଙ୍କବାସକେଉଁଠାରେ
୨ୟ-ଆଗେଥିଲେ ଗୋପେ ଯଶୋଦାକୋଳରେ ଏବେ ବଡ଼ଦେଉଳରେ
୧ମ-ଡାକନ୍ତି କ ନାମ ଧର ଗୋ ତାଙ୍କୁ ଡାକନ୍ତି କ ନାମ ଧରି ।
୨ୟ-କୋଟିକୁ ଗୋଟିଏ ଉଣା ତ ନୁହଇ ତାକ ନାମ ତାଙ୍କ ହରି ।୩
୧ମ-କେମନ୍ତେ ସେ ଯିବେ ତରିଛା ଗୋ ସଙ୍ଗାତ କେମନ୍ତେ ସେଯିବେ ତରିଛା
୨ୟ-ପାପୀଙ୍କି ତାରିବା ପାଇଁ ଉଡ଼ାନ୍ତି ଯେ ପତିତପାବନ ବାନା ।୪।
୧ମ-କେବେତାରିଥିଲେ କାକୁ ଗୋ ସଙ୍ଗାତ କେବେ ତରିଥିଲେକାକୁ
୨ୟ-ଅଜାମିଳ ପରି ପାପୀଅଛୁ ତରି ଆଉ କେ କହ ତାହାକୁ ।୫।
୧ମ-ଏବେ ଗଙ୍ଗେ କେତେଗଣ୍ଡାଗୋବଉଳ...ବଗଲେକେତେଗଣ୍ଡା ।
୨ୟ-ତା ଅଇଁଠାଭାତ ଭୁଞ୍ଜେଦେଲେ ଛିଣି ଯମର ଭାଙ୍ଗିବ ସଣ୍ଢା ।୬।
୧ମ-କ୨ ଯାଉଅଛୁ ଭେଇ ଗୋ ସଙ୍ଗାତ କ୨ ଯାଉଅଛୁ ଭେଇ ।
୨ୟ-ବାହୁଯାତ୍ରା ...ପର୍ବ ଉଆଇଚି ଦଳ ବଇଷ୍ଣବ ପାଇଁ । ୭ ।



( ଆନନ୍ଦରେ ମାଧବ କେ ମାତ—ବୃତ୍ତେ )

ଦେଖ ଚନ୍ଦନନୃପ ଭଉଁଣୀ ।

ଅହା କେସନ ସଖିରେ ଯାଏ ଘୂରି ଘୂରି । ପଦ ।

ସଙ୍ଗେ ମଦନଗୋପାଳ ଧରିଛନ୍ତି କେରୁଆଳ

ଶିରେ ଶିଖିପୁଚ୍ଛ ଚୂଳ ଛତ୍ର କରେ ଶୋଭା । ୧ ।

ସେବକେ କସ ରାଗରେ ଚାମର ଧରି ଆଗରେ

ପକାନ୍ତି ଅନୁରାଗରେ ଗାଇ ହରି ହରି । ୨ ।

ଭକ୍ତହୋଇ ସାଧୁଜନ ବଧୂର ଚରିତ୍ରମାନ

ଶୁଣେ କରନ୍ତି ଗାୟନ ପ୍ରାଣମନ ଭରି । ୩ ।

ପୁଷ୍ପ ବରଷନ୍ତି ସୁରେ ଥାଇ ଆକାଶ ପଥରେ

ବଇ ଡାକଇ ଅଭୁରେ ଶୁଣ ମୋ ଗୁହାରି । ୪ ।

—୦—

( କୀର୍ତ୍ତନ ସ୍ୱର )

ଦେଖିଣ ଚନ୍ଦର ଯାମିନୀ ମନ୍ଦର ଧର ଆନନ୍ଦରେ ଭୋଳେ ।

ସନ୍ଦରଉଦ୍ଭାସି ଚନ୍ଦ୍ରାବଳ ଭୁଲେ ଖେଳନ୍ତି ନରିନ୍ଦ୍ରଜଳେ । ପଦ ।

ସୁରେନ୍ଦ୍ର କଣ୍ଠୀନ୍ଦ୍ରବଦନ ପଲ୍ଲୀଙ୍କ ଅଙ୍କ ଢେଙ୍କ ଅବହେଳେ ।

ନୀଳକନ୍ଦର ଶଇଳ ଚୂଳ ଛଡ଼ା ନାବେ ବନେ କୁତୂହଳେ । ୧ ।

ବାଉଥିଲେ ନବରନ୍ଧରେ ମୁରଲୀ ଯେ କଦମ୍ବତରୁ ତଳେ ।

ପୁଟୀବନ୍ଦରଙ୍କୁ ଆଶ୍ରାକଲେ ତାହା ସୁନ୍ଦର ଦେଖିଣ ତୋଳେ । ୨ ।

ନନ୍ଦର ନନ୍ଦନ ପନ୍ଦର ନୃପୂନ ମୋକ୍ଷଦାତା କାଳେ କାଳେ ।

ଛଳଇ ପଦ ବୋଲଇ ବଇଷ୍ଣବ ସେ ଜଗତଚରଣେ ବଳେ । ୩ ।

—୦—

( ପ୍ରାଣସଙ୍ଗିନୀରେ କାଲି ମୁଁ କ—ବୃତ୍ତେ )

ଆସ ସଜନ ଗୋ ଦେଖିଯିବ ଚନ୍ଦନଯାତ୍ରା ।

ନାବପରେ ନାବକେଳ କରୁଛନ୍ତି ଗୋପୀନାଥ । ପଦ ।

ବାଜୁଛି କେତେ ବାଜଣା,
ତୁମ୍ଭଙ୍କୁ କି ନାହିଁ ଜଣା;
କେତେ କେତେ ନାରୀ ନର ଧାଇଁଛନ୍ତି ଅବିରତ । ୧ ।
ପଡ଼ୁଛି ଚନ୍ଦ୍ର ରଜନୀ,
ଏ କାଳେ ଆସ ସଜନୀ;
ଶୁଭୁଛି କୋକିଳ ଧ୍ୱନି ବହୁଛି ମନ୍ଦ ମରୁତ । ୨ ।
ଚୂଆ ଚନ୍ଦନରେ ସହୁ,
କର୍ପୂର ଧୂଳି ମିଶାଇ;
ମାରୁଥିଲେ ପିଚକାରୀ ଉଲୁସି ଉଠିବ ଚିତ୍ତ । ୩ ।
ମାଳ ମାଳ ମଲ୍ଲୀହାର,
ପିନ୍ଧି ନାଗରୀ ନାଗର;
ଆହା କି ମଧୁରେ ଗାଉଛନ୍ତି ବଧୂର ସଙ୍ଗୀତ । ୪ ।
ଯୁବକ ଯୁବତୀ ମିଶି,
ହେଉଥିବେ ହସାହସି;
ବଳେଷ୍ଣବ ଭଷି ପ୍ରୀତି ସ୍ଥାନକୁ କରି ସଙ୍କେତ । ୫ ।

—❋—

( ଧନ ଏତେବେଳୁ ଥାଅ ମୋତେ—ବୃତ୍ତେ )

ନଟବରବେଶ ନୋହିବ ଏପରି ହେ ବଂଶୀଧାରୀ । ପଦ ।
ଯେବେ ତ୍ରିଭଙ୍ଗିମା ଚୂଳ          ବାନ୍ଧିଥିବ ନନ୍ଦବାଳ
ହା ଦେବେ ଗୁଞ୍ଜାମାଳ
ନ ଛନ୍ଦିବ ଆଦମୂଳ
ଯାଣ ହେବ ଆମ୍ଭଙ୍କୁ ଭଗାରି ହେ । ୧ ।

ଯେବେ ଚନ୍ଦନ କପୋଳେ    ବିନ୍ଦୁ ଦେବ ଅବହେଳେ
ଗୋରଚନା ତାର ତଳେ
ଥିବ ନାହିଁ ସେହିକାଳେ
ଥିଲେ ଦେଖି ମରିବେ ନାଗରୀ । ୨ ।
ମକରକୁଣ୍ଡଳ ଶ୍ରୁତି    ଯୁଗେ ଥିଲେ ଶିରିପତି
ନାସାପୁଟେ ଗଜମୋତି
ଝୋଲକ ନ ଥିବ—ପତି
ବ୍ରତାବ୍ରତ କ୍ଷଣେ ଦେବ ସାରି ହେ । ୩ ।
କଣ୍ଠେ କଉସ୍ତୁଭ ମଣି    ଥିବ ଯେବେ ନୀଳମଣି
ଉତ୍ତରୀ ନ ଦେବ ପୁଣି
କଟିରେ କଟି କିଙ୍କିଣୀ
ସବୁ ସାଜ ଜାଣ ଏହିପରି ହେ । ୪ ।
ମନାକଲ ଯାହା ଯାହା    ମନୁ ନ ଭୁଲିବ ତାହା
ପୁତନା ପରାଣଖିଆ
ନାରୀ ମାରଣା ହଟିଆ
ଅମ୍ଭ ଗୁଣ (ତୋତେ) ବଇର ଗୁହାରୀ ହେ । ୫ ।

—*—

ଚନ୍ଦନ ବାହୁଡ଼ା ।

( ସଖୀ ଗୃହାଁ ଏ ପଦ—ବୃତ୍ତେ )

ଚାଲ ଦେଖିବା ମିତ, ଫେରୁଅଛି ସାରି ହରି ଚନ୍ଦନଯାତ । ପଦ ।
ତେଜି ନରେନ୍ଦ୍ର ସର    ଚାଲଇ ଧୀର ଧୀର
ରାଧିକା ବାମେ ତାର ଆଗେ ଚନ୍ଦ୍ରଶେଖର ।
ରସି ବିମାନପର    ବସନ୍ତି ଚଉଦିଗେ
ଯୋଗୀଙ୍କ ବୃତ୍ତ । ୧ ।

ମିଳ ବଡ଼ଦେଉଳେ                    ଗିଳବ ଏକାବେଳେ
ଖାଡିଏ ପଉଡିରୁ ଊଣା ନ ହେବ ଭଲେ ।
ଖୀରି ମରିଚ ଗଗ                    ଡାଲି ଶାଳର ସଂଗ
ବଗଡ଼ା ଭାତ । ୨ ।
ଅମାଲୁ ଦହିକଡ                    ଖୀର ସର ସ୍ବାଦ
ନାନାଜାତି ପିଠାକୁ ସେବକେ ଥିବେ ବାଢ଼ି ।
କଦଳା ଯୋଡ଼ ଯୋଡ଼                    ଦେଉଥିବେ ସଜାଡ଼ି
ମନ୍ଦ୍ରାଇ ଚଡ଼ୁ । ୩ ।
ମନେ ପଡ଼ିଲା ଯହୁଁ                    ପଳାଇଯାଏ ତହୁଁ
ଭଲ ନ ମଣ ଜାଣ ଅଛେ ଅସଲ ପାହୁ ।
କା ଝିଅ କାହା ବୋହୂ                    ଗୋପେ ନ ଥିଲେ ଆଉ
ନେଲ୍ଲ ମହତ । ୪ ।
ବଶଇ ପିନା ସାନ                    ଚଉଦ୍ଦଶ ଭୁବନ
ଦେଖି ଏହା ଗର୍ଭରେ ଯଶୋଦା ହେଲ୍ଲ ଛନ୍ନ
ନଇଶ୍ବର ମନ                    ହେବ ମୁଁ ଚରଦିନ
ହରି ତୋ ଭୃତ୍ୟ । ୫ ।



## ହୋରୀ ସଙ୍ଗୀତ ।

( ଗୋ ସଜନୀ ସୁଖକଥା ସୁଖୁ—ବୃନ୍ଦେ )

ସଖି ଗୋ ଚାଲ ଯିବା ବୃନ୍ଦାବନରେ
ଦେଖିବା ଖେଳନ୍ତି ହୋରୀ ଯଶୋଦା ମୋହନ ରେ । ପଦ ।
ଲଭକା କୁଞ୍ଜରେ ମିଳି
ଫଗୁ ବାଗିସଙ୍ଗେ ଗୋଳି
ରଙ୍ଗେ ରଙ୍ଗ ପିଚକାରୀ ମାରିବା ବଦନ ରେ । ୧ ।

ମଧ୍ୟେ ରାଧା କୃଷ୍ଣେ ଭରି
ଅଷ୍ଟସଖୀ ପାଶେ ଘେରି
ନାଚବା ଗୋ ଧରାଧରି ହୋଇ ସୁଖ ମନ ରେ । ୨ ।
ବସନ୍ତ ଅନିଲ ବାଜି
ବିକସି କୁସୁମ ରାଜି
ଚହଟୁ ଥିବ ସୁବାସ ଏମନ୍ତ ସୁ-ଦିନ ରେ । ୩ ।
ପିକର ପଞ୍ଚମମାନ
ତହିଁ ମଧୁପ ଗୁଞ୍ଜନ
ବଇଷ୍ଣବ ବୋଲେ ଶୁଣି ଜସ୍ତରିବା କାନରେ । ୪ ।



( ମେ ତୋ ଅର୍ଯ୍ୟୀ ରେ ସାମଲୟା—ବୃନ୍ଦେ )

ଆସ ମୋହନ, ବ୍ରଜ ମୋହନ
ଆସ ମୋହନ ଖେଳବ ରଙ୍ଗ ହୋଲି ମାରିବା ପିଚକାରୀ
ଗୋଳ ପୀତବସନେ । ପଦ ।
ଖୋଜି ଖୋଜି ବୃନ୍ଦାବନ କେତେ ସ୍ଥାନ ଚେଜଣ ଶୟନ ଅସନେ,
ରାଜିବ ନୟନ ଆଜି ଯିବ କାହିଁ
ରାଜକରି ନାଥ ଆସନେ । ୧ ।
ପୂଜିବୁ ମଜିବୁ ସ୍ନେହରେ ଭୁମୁରି ହେଜିବୁଁ ଚତ୍ତରେ ଏସନେ
ଇତର ପସରା ନ କଲେ ଖାତିର
ଭଜିବୁ ଯହର ଅଶନେ । ୨ ।
ହେ ନଟନାଗର ରସର ସାଗର ଉଜାଗରେ ଥାଇ ଏତା ସନେ
ହଜାଇବୁଁ ମାର ତ୍ରାସ ବୈ[illegible] ଦାସ
ଭାଷ ଗିରିଧାରୀ କେସନେ । ୩ ।



( ପୀତପଟ୍ଟିଆ ଲମ୍ପଟିଆ ମୋହନ—ବୃତ୍ତେ )

ହୋରି ଖେଳ ବଉଳ ବାଲୀ ଆସିଛ ଗୋ,
ବାରିଜାକ୍ଷି ଏହା କେଣ୍ଢେ ଶିଖୁଛ ଗୋ । ପଦ ।
କି ବୋଲିବେ ପତି
ଜାଣିଲେ ଏ ରୀତି
ନିଜ ଜାତି ବୃତ୍ତି ସତୀ ନାଶୁଛ ଗୋ । ୧ ।
ତୁମ୍ଭ ରଙ୍ଗବାସ
ଗୃହେଁ ହେବେ ରୋଷ
ବନେ ବନଜବଦନା ପଶିଛ ଗୋ । ୨ ।
ନିନ୍ଦିବେ ନଣନ୍ଦ
ଶାଶୁ ଭଣି ମନ୍ଦ
ପର ପଦାର୍ଥରେ କପାଁ ରସିଛ ଗୋ । ୩ ।
ଗୋପେ ହଟ୍ଟା ହେବ
ବଟ୍ଟା ଲାଗିଯିବ
ବଇଷ୍ଣବ ବିବେକକୁ କସୁଛ ଗୋ । ୪ ।

—*○*—

( ମେତେ ଜୀହେଲୁ ମାରେଙ୍ଗି ପିଚକାରି—ବୃତ୍ତେ )

ଏହା କହିଲେ କି ନୀଳମଣି ଛଡ଼ିବୁ ଥାଉ ଥାଉ ସେ ଗୃଭୁଗି । ପଦ
ହେଲେ ହେବୁ ଜାତିପାଟକେ ଅଟ୍ଟଳ
ଭଗାରିକି ପଛେ ହାତ ଯୋଡ଼ିବୁଁ । ୧ ।
ଅବିର ଅତର ପନୀରେ ଗୋଳଣ
ତୋ ପୀତବସନେ ଜିଣ୍ଟେ ଇଡ଼ିବୁଁ । ୨ ।
ଯାତି ଯୁଥୀ କୁନ୍ଦ ନଆଳ ମାଲତୀ
ଗୁନ୍ଥି ତୋ ଚନ୍ଦ୍ରକାଚୂଳେ ଭିଡ଼ିବୁଁ । ୩ ।

ବଇ ବୋଲେ ବୃଷଭାନୁଜେମା ଭୁଲେ

ତୋ! ଅଙ୍ଗ ଏକତ୍ର କରି ଯୋଡ଼ବୁଁ । ୪ ।

—※—

( ବ୍ରଜ ରମଣିହାସ—ବୃନ୍ଦେ )

ଖେଳିବା ଆସ ହୋରି ବ୍ରଜନାରୀ ମସ୍ତମରି ହୋଇ ପିଚକାରୀ । ପଦ ।

ରଙ୍ଗଧୂଳି ରଙ୍ଗେ ଉଡ଼ାଇବା,

ଅଙ୍ଗରେ ଅଙ୍ଗକୁ ଜଡ଼ାଇବା;

ଭୂମେ ଗଡ଼ାଗଡ଼ ବାସ ଭିଡ଼ାଭିଡ଼ି

ପୁଣି ହେବା ଧସ୍ତଧର, ଠସ୍ତଠର ଯିବ ଯିଏ ଯାହାଠାରୁ ହାରି । ୧ ।

ବନପ୍ରିୟ ବସି ଚୂତଡାଳେ,

ଭବେ ରବଦଏ କୁହୁକଳେ;

ମନ୍ଦେ ମନ୍ଦେ ଗନ୍ଧ- ବହ ପ୍ରସରଇ

ଭ୍ରମୁଛନ୍ତି ମଧୁହାର ଫୁଲେ ଘେରି ହେଲେ ଗୁଞ୍ଜନନାଦ ଝଙ୍କାର । ୨ ।

ବସନ୍ତରେ ନରନାରୀ ବଶ,

ବୁଲୁଛନ୍ତି ହୋଇ ହସହସ;

ବଇଷ୍ଣବ ଭାଷ ଚିନ୍ତି ଶ୍ରୀନିବାଧ

ଏ ଦାସେ ନାଥ ହେ ଉଧାର ଗିରିଧାରୀ ସୁରସିକ କୁଞ୍ଜବିହାରୀ । ୩ ।

—※—

( ଦେଖୋ ଗଙ୍ଗାମେ ଯମୁନା—ବୃନ୍ଦେ )

ଏଡ଼େ ଗରବ ତୋର ନନ୍ଦରଜାପୁଅରେ ।

ପିଚକାରୀ ମାରି ଭିଜାଇଲୁ ମୋର ଦେହରେ । ପଦ ।

ଏ ମୋ ପଟ୍ଟ ପିନ୍ଧାବାସେ ଲାଗିଗଲା ଦାଗ ।

ଦେଖିଲେ ଶାଶୁ ନଣନ୍ଦ ଆଗ ହେବେ ରାଗି ।

ପଚାରିଲେ କି କହିବି ତାଙ୍କ ମୁହଁରେ । ୧ ।

ଧୋଇଲେ ତ ନ ଛାଡ଼ିବ ଅମ୍ବରର ରଙ୍ଗ ।
ଭାଙ୍ଗି ଦେଲୁ କେଡ଼େ ମୋର ମନର ସରାଗ ॥
ନୂଆବାସ ପିନ୍ଧିଥିଲି ଦୁଇପହରେ । ୨ ।
ଯଶୋଦାସୁତ ମୋ କାନ୍ତ ବଡ଼ ଦୁରୁଦଣ୍ଡ ।
ଦେଖିଲେ ଦେବ ଏକ୍ଷଣି ଯେତେମତେ ଦଣ୍ଡ ॥
ଚନ୍ଦ୍ରା ପଣନ୍ତେ ପୋଛିବି ଯା ଆଖିଲୁହରେ । ୩ ।
ଗୁରୁଗଉରବ ସିନା ତୋତେ ଜଣାନାହିଁ ।
ମୁଁ ପରା ଲେଖାରେ ତୋର ସହୋଦର ମାଇଁ ॥
ଚନ୍ଦ୍ରସେଣା ନାରୀ ବୃଷଭାନୁଝିଅରେ । ୪ ।
ସବୁଦିନେ ନ ଗଲା ତୋ ଏହି ଧିଟପଣ ।
ସହି ସହି ହେଲାଣି ମୋ ହୃଦୟ ପାଷାଣ ॥
ବୈଷ୍ଣବ କହି ମୋ ଆଗରୁ ଯାଅରେ । ୫ ।

—※—

( ପ୍ରେମ ସରସିରେ ପ୍ରେମରବକରେ—ବୃତ୍ତେ )

ଶ୍ରୀନନ୍ଦନନ୍ଦନ ଜଗତବନ୍ଦନ ରାଧାସଙ୍ଗ ହୋରୀ ଖେଳନ୍ତି ।
ଅଞ୍ଚଳେ ଅବୀର ପୂରାଇ ଶ୍ରୀମତୀ ଶ୍ରୀକୃଷ୍ଣ ଶ୍ରୀଅଙ୍ଗେ ବୋଳନ୍ତି । ପଦ ॥
ବେଢ଼ି ଅଛନ୍ତି ଗୋପୀବୃନ୍ଦ ।
କେ କାହାର ନାମଧରି ଡାକି ଉଚ୍ଚେ ପଛେ ପଛେ ପୁଣି ଚଳନ୍ତି । ୧ ॥
କେହୁ ଧରଣ ବୀଣାଯନ୍ତ୍ର ।
ବଜାନ୍ତି ସଖିରେ ଗାଇଣ ମଧୁରେ କେହୁ ବନ୍ଧୁଳ ତୋଳନ୍ତି । ୨ ।
ବାହା ଟେକି କେ କଲେ ନୃତ୍ୟ ।
ତାଳ ମୁରୁଦଙ୍ଗ ବାଜି ନଜ ଅଙ୍ଗ ତାଳ କେ କା ପାଶେ ମିଳନ୍ତି । ୩ ।
[illegible] କରନ୍ତେ ବେଣୁନାଦ ।
ବଇ କହି ଓଗାଧି ପାଦକୁ ଉଠାଇ ଧାଇଁ କାହାକୁ କେ ବଳନ୍ତି । ୪ ।

—୩—

( ଝୁଲନ ଗୋ କିଶୋରୀକାନ୍ତା—ବୃତ୍ତେ )

ଯୁଗଳ ଗୋ ଶ୍ରୀକୃଷ୍ଣ ରାଧା ।
ଉଭୟେବାରୁ କି ଶୋଭା ପାଉଛି ବସୁଧା । ପଦ ।
ଲଳିତା ବିଶାଖା ରଙ୍ଗବତୀ ଦୂତି ବୃନ୍ଦା
ହେମଲତା ସୁରସିକା ଆବର ସୁମେଧା । ୧ ।
ହୃଷ୍ଟଚିତ୍ତେ ଅଷ୍ଟ ସଖୀ ବଳାଇ ଶରଧା,
ଦୋଉଛନ୍ତି ଗୃହିକଡ଼ି ତେଜି ବିଘ୍ନବାଧା । ୨ ।
ସୁମନେ ସୁମନ ପୂରି କ୍ଷେପନ୍ତି ବିବୁଧା,
ବାଜଇ ଦେବ ଦୁନ୍ଦୁଭି ତା ଧିନା ତା ଧିନା । ୩ ।
ଚଳ ଚଳ ନାଚୁଛନ୍ତି ସରବ ପ୍ରମଦା,
ସେ ଚରଣ ବଇଷ୍ଣବ କରି ଚଳେ ପନ୍ଦା । ୪ ।

—❀—

( ତା ତା ଥେଇ ଥେଇ ଶ୍ୟାମ ତୋମାଦେର—ବୃତ୍ତେ )

ନାଚ ନଚ ବନମାଳି ବଂଶୀଧାରୀ,
ନାଚ ହେ ମନମୋହନ ମୁରଲୀଅଧର;
କେମନ୍ତେ ଯୁଗଳଛବି ଦଶିବ ସୁନ୍ଦର
ନାଚ ନନ୍ଦସୁତ ହେ ।
ବିଧୁଙ୍କର ଧରି ସଖୀରେ ଚନ୍ଦ୍ରାବଳୀହାତ
ନାଚ ନନ୍ଦସୁତ ହେ ।
ଚଳାଇ ଚନ୍ଦ୍ରକାଚୂଳ ଗାଇଣ ସଙ୍ଗୀତ
ନାଚ ନନ୍ଦସୁତ ହେ ।
ନିରେଖି ଏ ପାପନେତ୍ର ହୋଇବ ପବିତ୍ର
ନାଚ ନନ୍ଦସୁତ ହେ ।
ପଳାଇବ ହେଲେ କୋଟି ଜନ୍ମର ଦୁରିତ
ନାଚ ନନ୍ଦସୁତ ହେ । ୧ ।

ଲବଣୀ ଅଶାରେ କେବେ ନାଚଥିଲ ବ୍ରଜେ
ଆଜ ନାଚ ବ୍ରଜରାଜ ଏ ସଖିସମାଜେ,
ଯାନଜନବନ୍ଧୁ ହେ ।
ମାନ ଏ ବଚନ ନାଚ ନନ୍ଦହୃଦବନ୍ଧୁ
ଯାନଜନବନ୍ଧୁ ହେ ।
ମାନଲେ ନ ହେବ ଊଣା ସେ କରୁଣାସିନ୍ଧୁ,
ଯାନଜନବନ୍ଧୁ ହେ ।
ଜଗତ ପବିତ୍ର ସେବନ୍ତି ଯେ ପଦେ ସାଧୁ
ଯାନଜନବନ୍ଧୁ ହେ ।
ସେ ପଦ ଉଠାଇ ନାଚ ଅପଦଙ୍କୁ ଛେଦୁ
ଯାନଜନବନ୍ଧୁ ହେ । ୨ ।
ଦେଖନ୍ତୁ ଏ ବୃନ୍ଦାବନ ପଶୁ ପକ୍ଷୀକୁଳ
ଦେଖନ୍ତୁ ଏ ବୃକ୍ଷ ଲତା ଗିରୀ ନଦୀଜଳ,
ଦେଖୁ ହୃଦରାଜ ହେ ।
ଦେଖୁ ଗୁଲ୍ମ ତୃଣ ନବପଲ୍ଲବରେ ସାଜ
ଦେଖୁ ହୃଦରାଜ ହେ ।
ଜ୍ଞାନାଜ୍ଞାନ ପାପ ତାର ପଳାଇବ ତେଜ
ଦେଖୁ ହୃଦରାଜ ହେ ।
ସେ ନୃତ୍ୟ ଗୃହିଁ ଦାମ୍ଭିକ ଦମ୍ଭ ଯାଉ ଭାଜ
ଦେଖୁ ହୃଦରାଜ ହେ ।
କବି ବଇଷ୍ଣବ ଚରୁ ତୋର ନାମ ଭଜ
ଦେଖୁ ହୃଦରାଜ ହେ । ୩ ।

—❀—

( ଯାଅ ଯାଅ ହେ ଶ୍ୟାମଚନ୍ଦ୍ର—ବୃତ୍ତେ )

ଥାଅ ଥାଅ ହେ ବ୍ରଜରାଜ କାଲି ଝୁଲିବ କୁଞ୍ଜରେ,
ବାମେ ବୃଷଭାନୁଯେମା ବସିଲେ କ ସଙ୍ଗରେ । ପଦ

ଘରବ ସଖୀଏ ମିଳି ସଜାଇବୁଁ ଅସି ଦୋଳି
ଖଞ୍ଜିବୁଁ ନାନା ସୁମନ ମାଳ ଗୁନ୍ଥିଣ ସଞ୍ଚରେ । ୧ ।
ଛିନ୍ଦିଣ ଚୂତ ପଲ୍ଲବ ବାନ୍ଧିବୁ ଶ୍ରୀଧାବନ୍ଧବ
ଦୁର୍ଲ୍ଲଭ ମଣିବୁ ନାରୀ ଜନ୍ମକୁ ତବ ନଜରେ । ୨ ।
ଧାଡ଼ ଧାଡ ଶୁକ ସାରୀ ବସିଥିବେ କୁଞ୍ଜେ ଘେର
ଘୋଷୁଥିବେ ଗ୍ରମହର ନାମ ଚେଞ୍ଚଣ ବ୍ୟାଜରେ । ୩ ।
ଧରି ଧୀରେ ପାଟ ଡୋରି ପଞ୍ଚାଇବୁ ହେ ମୁରାରୀ
ବଇଷ୍ଣବ ଇଷ୍ଟ କରି ସେବେ ସେ ପଦ କୁଞ୍ଜରେ । ୩ ।

—*O*—

( ନରେ ଭଜ ଗ୍ରମ ନାମ—ବୃତ୍ତେ )

ଯା ଯା ପୂର୍ଣ୍ଣଚନ୍ଦ୍ରମୁଖୀ,
କାଲି ସଙ୍କେ ସଙ୍କେ କୁଞ୍ଜେ ହେବା ଦେଖା ଦେଖି ଗୋ । ପଦ ।
ଗୋପୀନାଥ ନାମ ବହ ଗୋପେ ଜନମିଛୁ ମୁହିଁ
ରଖି ତବ ଓଷ୍ଠ ସୁଧା ହେଲେ ହେବ ସୁଖୀ ଗୋ । ୧ ।
ନୁହେ ମୁ ନନ୍ଦ ନନ୍ଦନ ଜାଣ ତୁମ୍ଭ ଗଣ୍ଡିଅନା
ସାଇତ ରଖିବ ହୃଦ ସଦନରେ ଠିକ ଗୋ । ୨ ।
ଷୋଳସହସ୍ର ତରୁଣୀ ସ୍ନେହରେ ସଦା ମୁଁ ଋଣୀ
ବାରୁଣୀ ଚନ୍ଦ୍ରମା ରବ ଦେଉଅଛ ସାଖୀ ଗୋ । ୩ ।
ବଇଷ୍ଣବର ଗୁହାରୀ କହୁଅଛି କର ଧରି
ଉରଜ ଉପରେ ଥାଅ କୃଷ୍ଣ ବୋଲି ଲେଖି ଗୋ । ୪ ।

—O*O—

( ନେଏନା ନେଏନା ସଖି—ବୃତ୍ତେ )

ଗ୍ରଧା ସଙ୍ଗେ କର ବରଜନାଗରୀ ଯେ ଯାହା ବାସରେ ମିଳନ୍ତି ଗୋ
କାଲି କୁଞ୍ଜଲୀଳା ସେ ନବ ଛଇଲା ହୃଦକଙ୍କେ ବନ୍ଧି ରଖିଲେ ଗୋ । ପ ।

ଶୁଦ୍ଧକର ଗିରେ ମତି ନ ବଳଲା କୃଷ୍ଣପ୍ରେମାନଳେ ଜଳଲେ ଗୋ ।
ଭୁଲ ଶେଯ ତେଜି ବାଭୁଲ ପରାଏ ଧୂଳିପରେ ଅଙ୍ଗ ଢାଳିଲେ ଗୋ ॥
ପୋଟିକ ଦିବସ କୋଟିଯୁଗ ସମ ମାନସେ ମାନିଣ କଳଲେ ଗୋ ।
ନୟନରେ ନିଦ୍ରା ଶୟନେ ନ ଆସେ ଜାଗରବ୍ରତ ଯା ପାଳିଲେ ଗୋ ॥
ଜଣୀରେ ନଳିନୀ ଦଶା ଯେଉଁପରି ଶଶୀହାସି ଚନ୍ଦ୍ର ବଳିଲେ ଗୋ ।
ନିଶାକୁ ଲୋଡ଼ନ୍ତି ଗୋପ ଯୋଷାପନ୍ତି ବନ୍ଧୁ ବନସ୍ତେ କଟାଇଲେ ଗୋ
ସମସ୍ତ ନିକଟେ ଦେଖି ଘଟଣା ମହାଦୁଃଖ ଦୂରେ ଟାଳିଲେ ଗୋ ।
ବଇଷ୍ଣବ ଭାଷ ଲୁଞ୍ଚେ ପରବେଶ ନନ୍ଦ ସୁତକୁ ସଙ୍ଗୋଳିଲେ ଗୋ ॥



—୩—

( ନାଚୁଛି ବସନ୍ତ ପକ୍ଷି ଘରେ ଘରେ ରହିଥାମେ—ବୃତ୍ତେ )

ଝୁଲନ୍ତି ନିକୁଞ୍ଜବନେ ଶ୍ୟାମସନେ ବିନୋଦିନୀ ।
ଗୃହପାଶେ ବେରଛନ୍ତି ଆନନ୍ଦେ ବ୍ରଜ କାମିନୀ । ପଦ ।
ମଳୟ ଶିଖର ଶିରୀ ଅବହେଳେ କରି ଗୈରୀ
ବହେ ମଧୁର ବସନ୍ତ ଜଳେ ଖେଳଇ ନଳିନୀ । ୧ ।
ପଲ୍ଲବିତ ତରୁ ଲତା ଯେମନ୍ତେ ନବ ବନିତା
ବଲ୍ଲଭକୁ ଦେଖି ସ୍ନେହେ ହୋଇଛନ୍ତି ଅଭିମାନୀ । ୨ ।
ନିରେଖି ଚୂତ ମୁକୁଳ ଉଲ୍ଲାସେ ରବେ କୋକିଳ
ଗୁଞ୍ଜରି ଗୁଞ୍ଜନ ତାର ସହିତକି ବୀଣାଧ୍ୱନି । ୩ ।
ହିନ୍ଦୁ ନୂଆ ବେଶ ଭୂଷା ବୁଲନ୍ତି ପୁରୁଷ ଯୋଷା
ବଇଷ୍ଣବର ଏ ଭାଷା ନୂଆଭାବ ହୃଦେ ଘେନ । ୪ ।





ସମାପ୍ତ ।

ଅଶୁତୋଷ ପ୍ରେସ, ଚେଲିଆବଜାର—କଟକ ।